

ମୂଲ୍ୟ : ଟ 5-00

ନ୍ୟାସ୍‌ନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ



# ଆମ ଶରୀର

## ଏକ ଅଦ୍ଭୁତ ଯନ୍ତ୍ର

ରମେଶ ବିଜ୍‌ଲାନି

ଚିତ୍ର

ନିରେନ୍ ସେନ ଗୁପ୍ତ



ନେହେରୁ ବାଳ ପୁସ୍ତକାଳୟ

# ଆମ ଶରୀର

## ଏକ ଅଦ୍ଭୁତ ଯନ୍ତ୍ର

ରମେଶ ବିଜ୍‌ଲାନି

ଅନୁବାଦ
ରାମକୃଷ୍ଣ ନନ୍ଦ

ଚିତ୍ର

ନିରେନ୍ ସେନ ଗୁପ୍ତ



ନ୍ୟାସ୍‌ନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ



1989 (ଶକାବ୍ଦ 1911)

ଓଡ଼ିଆ ଅନୁବାଦ

Our Body (ORIYA)
ମୂଲ୍ୟ : ଟ 5-00

ଡାଇରେକ୍ଟର, ନ୍ୟାସ୍‌ନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ, ଏ-5, ଗ୍ରୀନ୍ ପାର୍କ, ନୂଆଦିଲ୍ଲୀ-110016 ଙ୍କଦ୍ୱାରା ପ୍ରକାଶିତ।

ପାର୍ସଲଟିଏ ପାଇଲେ ତା' ଭିତରେ କ'ଣ ଅଛି ଜାଣିବାକୁ ପ୍ରଥମେ ତୁମର ଇଚ୍ଛା ହୁଏ । ତାହା ଦେଖିବା ପାଇଁ ତୁମେ ପାର୍ସଲଟିକୁ ଖୋଲିପକାଅ । ଆମ ଦେହଟି ସେହିପରି ଏକ ପାର୍ସଲ ଭଳି । ତା' ଭିତରେ ଥିବା ଗୋଟିଏ ଅଦ୍ଭୁତ ଯନ୍ତ୍ରକୁ ଦେହ ଘୋଡ଼ାଇ ରଖିଛି । ସେ ଯନ୍ତ୍ରଟି ଦେଖିବାକୁ କିଭଳି, ସେ କେମିତି କାମ କରେ, ତାହା ଜାଣିବାକୁ ତୁମର ମନ ହେଉଥିବ । ଏ ବହିରୁ ତୁମେ ସେ ବିଷୟରେ କିଛି ଜାଣି ପାରିବ ।

କିନ୍ତୁ ଏ ବହି କିମ୍ବା ଏ ଜାତୀୟ ଅନ୍ୟାନ୍ୟ ବହି ଯେତେବେଳେ ନ ଥିଲା, ସେତେବେଳେ ଏ ସବୁ ବିଷୟ ଆମେମାନେ ଜାଣିଲେ କେମିତି ? ପ୍ରଶ୍ନ ପଚାରି ଜାଣିଲେ, ପ୍ରଶ୍ନ କଲେ ଉତ୍ତର ମିଳେ । ସେହି ଉତ୍ତର ହିଁ ଜ୍ଞାନର ମୂଳ । ତେଣୁ ଏ ପର୍ଯ୍ୟନ୍ତ ଆମେ ଯାହାସବୁ ଜାଣିଛୁ, ପ୍ରଶ୍ନ ପଚାରି ଜାଣିଛୁ ।

ଆମ ଦେହ ଭିତରେ କି କାମ ଚାଲିଛି, ତାହା ଜାଣିବାକୁ ତୁମ ମନରେ କେତେକ ପ୍ରଶ୍ନ ଉଠୁଥିବ । ଏ ବହିରେ ତୁମେ ତା'ର ଉତ୍ତର ପାଇବ । କିନ୍ତୁ ଜାଣିରଖ ପ୍ରଶ୍ନର ଅନ୍ତ ନାହିଁ । ପଢୁ ପଢୁ ଆହୁରି ନୂଆ କଥା ଜାଣିବାକୁ ଇଚ୍ଛା ହୁଏ ଏବଂ ତା'ର ଉତ୍ତର ଖୋଜ । ତୁମେ ଭାବୁଥିବ କିଏ କାଳେ ତୁମ ପ୍ରଶ୍ନ ସବୁ ଶୁଣି ତୁମକୁ ବୋକା ମନେ କରିବ । ନା, ତା' ନୁହେଁ । ମୋଟେ ପ୍ରଶ୍ନ ନ ପଚାରିବା ଅପେକ୍ଷା ଯେ କୌଣସି ପ୍ରଶ୍ନ ପଚାରିବା ଭଲ ।



ଦେହର କାମ ପ୍ରାୟ ଗୋଟିଏ ଇଞ୍ଜିନର କାମ ପରି । ଇଞ୍ଜିନରେ କୋଇଲା ଦରକାର । ତାକୁ ପୋଡି ସେ ଶକ୍ତି ପାଏ । ସେହି ଶକ୍ତିବଳରେ ସେ ଚାଲିଆସେ ଦୌଡେ । ପୁଣି କୋଇଲା ପୋଡିବା ଫଳରେ ଧୂଆଁ ପରି ଅଦରକାରୀ ପଦାର୍ଥ ମଧ୍ୟ ବାହାରେ । ଇଞ୍ଜିନ ତାକୁ ବାୟୁରେ ଛାଡିଦିଏ ।

ଆମ ଦେହ ସେହିପରି ଖାଦ୍ୟ ଦରକାର କରେ । ଖାଦ୍ୟକୁ ଦହନ କରି ଅର୍ଥାତ୍ ଜୀର୍ଣ୍ଣ କରି ଆମେ ଶକ୍ତି ପାଉଁ । ସେହି ଶକ୍ତିବଳରେ ଆମେ ଦୌଡାଦୌଡି କରୁ । ଖାଦ୍ୟର ଦହନ ଫଳରେ କେତେକ ଅଦରକାରୀ ପଦାର୍ଥ ମଧ୍ୟ ବାହାରେ । ତାକୁ ଆମ ଦେହ ଫୋପାଡିଦିଏ । କିନ୍ତୁ ଇଞ୍ଜିନଠାରୁ ଆମେ ଏଇ ଗୁଣରେ ଉତ୍କୃଷ୍ଟ ଯେ, ଖାଦ୍ୟର ଦହନ ବେଳେ ଆମ ଦେହ ତାତିଯାଏ ନାହିଁ ।

ଖାଦ୍ୟ ଖାଇଲେ ଦୌଡାଦୌଡି କରିବାକୁ ବଳ ଆସେ ଓ ଆମେ ଦିନକୁ ଦିନ ବଢୁଁ । ଗହମ, ଚାଉଳ, ଡାଲି ଓ ଦୁଧ—ଏସବୁ ଆମର ଖାଦ୍ୟ । କିନ୍ତୁ ଏଗୁଡିକ ଆମ ଦେହ ବା ହାତଗୋଡଠାରୁ ଭିନ୍ନ ଦେଖାଯାନ୍ତି । କିପରି ତା'ହେଲେ ଏ ଖାଦ୍ୟରୁ ଆମ ହାତଗୋଡ ଗଢି ହୋଇଯାଉଛି ? ଆମେ ଯଦି ଆମର ଖାଦ୍ୟକୁ ଖୁବ୍ ଛୋଟ ଛୋଟ ଗୁଣ୍ଡ କରିଦେବା, ତେବେ ସେଥିରୁ କେତେକ ଭିନ୍ନ ପ୍ରକାର ପଦାର୍ଥ ବାହାରିବ । ଆମ ଦେହ ଯେଉଁ ସବୁ ପଦାର୍ଥରେ ତିଆରି ହୋଇଛି, ଏଗୁଡିକ ସେହି ଜାତୀୟ ପଦାର୍ଥ । ତେଣୁ ଆମକୁ କ'ଣ କରିବାକୁ ହୁଏ ଶୁଣ । ପ୍ରଥମେ ଖାଦ୍ୟକୁ ଭାଙ୍ଗି ଖୁବ୍ ସୂକ୍ଷ୍ମ ଗୁଣ୍ଡ କରିବାକୁ ହୁଏ ଏବଂ ତା'ପରେ ସେଗୁଡିକୁ ଆଉ ଥରେ ଭିନ୍ନ ଭାବରେ ସଜାଇ ରଖି-ବାକୁ ହୁଏ, ଯେପରି ଦେହଭଳି ଦେଖାଯିବ ।

ଆମେ ଯେଉଁ ଖାଦ୍ୟ ଖାଉ, ତାହା ଏପରି ସୂକ୍ଷ୍ମ ଗୁଣ୍ଡ ହୋଇ ଭଙ୍ଗାଯାଏ କେଉଁଠି ? ପାକସ୍ଥଳୀରେ ଏବଂ ଅନ୍ତରେ ସେ କାମ ହୁଏ । ଏହାକୁ ହଜମକ୍ରିୟା କହନ୍ତି । ଭଙ୍ଗା ହେବା ପରେ ସେହି ଖାଦ୍ୟ ଗୁଣ୍ଡସବୁ ରକ୍ତକୁ ଚାଲିଯାଏ । ରକ୍ତ ସେଗୁଡିକୁ ଦେହର ବିଭିନ୍ନ ଅଂଶକୁ ବୋହିନିଏ । କେତେକ ଖାଦ୍ୟଗୁଣ୍ଡର ଦହନ ଦ୍ୱାରା ଆମେ ଶକ୍ତି ପାଉଁ । ଆଉ କେତେକ ଭିନ୍ନ ରୂପରେ ସଜା ହୋଇ ଦେହର ଅଙ୍ଗପ୍ରତ୍ୟଙ୍ଗ ଗଠନ କରେ, ଯାହା ଫଳରେ ଆମେ ବଢୁ ଏବଂ କ୍ଷୟ ହେଉଥିବା ଅଂଶକୁ ସଜାଡି ଥାଉ । ତେଣୁ ଏହି ଦୁଇ ପ୍ରକାର କାମ କରିପାରୁଥିବା ଜିନିଷ ଆମ ଖାଦ୍ୟରେ ରହିବା ଆବଶ୍ୟକ । ଯେଉଁ ଖାଦ୍ୟରେ ଗହମ, ଚାଉଳ, ଡାଲି, ସଜ ପନିପରିବା ଓ ଦୁଧ ମିଶି-ଥାଏ, ତାହା ହିଁ ଏପ୍ରକାର ଖାଦ୍ୟ । କେବଳ ଏଥିକୁ ଖାଇଲେ ହେବ ନାହିଁ, ଯଥେଷ୍ଟ ପରିମାଣରେ ପ୍ରତିଦିନ ଖାଇବାକୁ ପଡିବ । ତାହାହେଲେ ଆମ ଦେହ ଦରକାର କରୁଥିବା ପ୍ରତ୍ୟେକ ଜିନିଷ ଏଥିରୁ ମିଳି ପାରିବ । ଏପରି ଖାଦ୍ୟ ପାଇଲେ ଆମ ଦେହରେ ବଳ ଆସିବା ସଙ୍ଗେ ସଙ୍ଗେ ବଢିବାରେ ମଧ୍ୟ ସୁବିଧା ହେବ ।



ଖାଦ୍ୟ ଅଣୁଗୁଡ଼ିକ ସମ୍ପୂର୍ଣ୍ଣ ରୂପେ ଜୀର୍ଣ୍ଣ ନ ହେଲେ ଦେହକୁ ଶକ୍ତି ଦେଇ ପାରନ୍ତି ନାହିଁ; ତେଣୁ ସେମାନେ ଅମ୍ଳଜାନ ନାମକ ଗ୍ୟାସ୍ ମଧ୍ୟ ଦରକାର କରନ୍ତି । ପ୍ରଶ୍ୱାସରେ ଆମେ ଯେଉଁ ବାୟୁ ଦେହ ଭିତରକୁ ନେଉ ସେଥିରେ ଅମ୍ଳଜାନ ଥାଏ । ପ୍ରଶ୍ୱାସ ନେଲାବେଳେ ତୁମ ଛାତି କିପରି ଫୁଲି ଉଠେ ଦେଖ । ଛାତି ଫୁଲି ଉଠିବାବେଳେ କିଛି ବାୟୁ ଆମ ଫୁସ୍‌ଫୁସ୍‌କୁ ଯାଏ । ଏହି ବାୟୁ ଫୁସ୍‌ଫୁସ୍‌କୁ ଯାଇ ସାଙ୍ଗରେ ନେଇଥିବା ଅମ୍ଳଜାନରୁ କିଛି ରକ୍ତରେ ଛାଡ଼ିଦିଏ ।

ପ୍ରଶ୍ୱାସରେ ଆମେ ଯେଉଁ ବାୟୁ ଗ୍ରହଣ କରୁ, ତାହା ସାଧାରଣତଃ ବିଶୁଦ୍ଧ ନ ଥାଏ। କାରଖାନାରୁ, ରୋଷେଇଘରୁ, କାର୍ ଏବଂ ବସ୍‌ରୁ ଯେଉଁ ଧୂଆଁ ବାହାରେ, ସେଥିରେ ବାୟୁ ଦୂଷିତ ହୋଇଯାଏ । କିନ୍ତୁ ଆମ ଫୁସ୍‌ଫୁସ୍‌କୁ ଯାଉଥିବା ବାୟୁ ବିଶୁଦ୍ଧ ହେବା ଆବଶ୍ୟକ । ବାୟୁ ଫୁସ୍‌ଫୁସ୍‌ରେ ପହଞ୍ଚିବା ପୂର୍ବରୁ ପ୍ରଥମେ ନାକ ଭିତର ଦେଇ ଯାଏ । ନାକରେ ଥିବା ଲୋମ ଚାଲୁଣୀ ପରି କାମ କରେ । ବାୟୁକୁ ଫୁସ୍‌ଫୁସ୍‌କୁ ଛାଡ଼ିବା ପୂର୍ବରୁ ତାକୁ ଛାଣି ସଫା କରିଦିଏ । ପାଟିରେ ଲୋମ ନ ଥିବାରୁ ତାହା ବାୟୁକୁ ସଫା କରିପାରେ ନାହିଁ । ଏଣୁ ଆମେ ଯଦି ପାଟିବାଟେ ପ୍ରଶ୍ୱାସ ନେବା, ତାହାହେଲେ ମଇଳା ବାୟୁ ଫୁସ୍‌ଫୁସ୍‌କୁ ଚାଲିଯିବ । ଏହା ଭଲ ଅଭ୍ୟାସ ନୁହେଁ । ତେଣୁ ମନେରଖ —କଥା କହିବା, ଖାଇବା ବା ସର୍ଢ ସମୟ ଛଡ଼ା ଅନ୍ୟ ସମୟରେ ପାଟିକୁ ବନ୍ଦ ରଖିବ ।

CARBON DIOXIDE

AIR

OXYGEN

ତୁମେ ଯେ କେବଳ ପ୍ରଶ୍ୱାସ ନେଉଛ ତା ନୁହେଁ, ନିଃଶ୍ୱାସ ମଧ୍ୟ ଛାଡୁଛ । (ନାକ ପୁଡା ପାଖରେ କିଛି ସମୟ ଅଙ୍ଗୁଠି ରଖିଲେ ତାହା ଜାଣିପାରିବ ।) ଫୁସ୍‌ଫୁସ୍‌ରେ ପଶୁଥିବା ବାୟୁ କିଛି ଅମ୍ଳଜାନ ରକ୍ତରେ ଛାଡିଦିଏ, ରକ୍ତ ମଧ୍ୟ ତା' ଦେହରେ ଥିବା କିଛି ଅଙ୍ଗାରକାମ୍ଳ ସେ ବାୟୁରେ ଛାଡିଦିଏ । ତେଣୁ ନିଃଶ୍ୱାସ ବାୟୁ ଅପେକ୍ଷା ପ୍ରଶ୍ୱାସ ବାୟୁରେ ଅଧିକ ଅମ୍ଳଜାନ ଏବଂ କମ୍ ଅଙ୍ଗାରକାମ୍ଳ ଥାଏ । ପେଟରେ ଖାଦ୍ୟ ଜୀର୍ଣ୍ଣ ହେବାବେଳେ ଅଙ୍ଗାରକାମ୍ଳ ରୂପକ ଏହି ଅଦରକାରୀ ପଦାର୍ଥଟି ଜାତ ହୁଏ । ଫୁସ୍‌ଫୁସ୍ ଏହିପରି ଆମକୁ ଦୁଇପ୍ରକାରେ ସାହାଯ୍ୟ କରେ—ପ୍ରଶ୍ୱାସ ନେବାବେଳେ ଦେହକୁ ଅମ୍ଳଜାନ ଯୋଗାଇଦିଏ ଏବଂ ନିଶ୍ୱାସ ଛାଡିବାବେଳେ ଦେହରୁ ଅଙ୍ଗାରକାମ୍ଳ ବାହାର କରିଦିଏ ।



ଅନ୍ତ ହଜମ ହୋଇଥିବା ଖାଦ୍ୟକୁ ରକ୍ତ ପାଖକୁ ପଠାଇଦିଏ । ଫୁସ୍‌ଫୁସ୍ ରକ୍ତ ପାଖକୁ ଅମ୍ଳଜାନ ପଠାଇଦିଏ । ରକ୍ତ ଦେହର ସବୁ ଅଂଶକୁ ଯାଉଛି । ଏଣୁ ଦେହର ସବୁ ଅଂଶକୁ ରକ୍ତ, ଖାଦ୍ୟ ଓ ଅମ୍ଳଜାନ ବୋହିନିଏ । ଏହି ରକ୍ତ ମଧ୍ୟ ଦେହର ସବୁ ଅଂଶରୁ ଅଙ୍ଗାରକାମ୍ଳ ଏବଂ ଅନ୍ୟାନ୍ୟ ଅଦରକାରୀ ପଦାର୍ଥ ନେଇଆସେ । ତୁମେ ଝୁବୁଥିବ ରକ୍ତର କାମ ତାହାହେଲେ ଖୁବ୍ ଗୁରୁତ୍ୱପୂର୍ଣ୍ଣ । ସେକଥା ଏକବାରେ ଠିକ୍ । ଜୀବନ ପାଇଁ ରକ୍ତ ଅତ୍ୟନ୍ତ ଆବଶ୍ୟକ । ଯେଉଁ ଖାଦ୍ୟ ଓ ଅମ୍ଳଜାନ ଆମକୁ ବଞ୍ଚାଇ ରଖିଛି, ତାକୁ ସେ ଶରୀରର ବିଭିନ୍ନ ଅଂଶରେ ପହଞ୍ଚାଇ ଦେଉଛି । ପୁଣି ଯେଉଁସବୁ ଦୂଷିତ ପଦାର୍ଥ ଜୀବନ ପ୍ରତି ବିପଦ, ତାକୁ ସେ ଦେହର ବିଭିନ୍ନ ଅଂଶରୁ କାଢ଼ି ନେଇ ଆସୁଛି । ଆଉ କେତେକ ପଦାର୍ଥ ମଧ୍ୟ ରକ୍ତ ବୋହିନିଏ । ଦେହର ଏକ ଅଂଶରୁ ଅନ୍ୟ ଅଂଶକୁ ଜିନିଷ ନିଆଅଣା କରିବା ରକ୍ତର ଏକ ପ୍ରଧାନ କାମ । ଅନ୍ୟ କଥାରେ, ଆମ ଦେହର ପରିବହନ କାର୍ଯ୍ୟ ଏହାଦ୍ୱାରା ସାଧିତ ହୁଏ ।

ରକ୍ତ ଯଦିଓ ତରଳ ଦେଖାଯାଏ, ଏଥିରେ ଲକ୍ଷ ଲକ୍ଷ ସୂକ୍ଷ୍ମ ପଦାର୍ଥ ରହିଛି । ଅଣୁବୀକ୍ଷଣ ଯନ୍ତ୍ର ତଳେ ଟୋପାଏ ରକ୍ତକୁ ପରୀକ୍ଷା କଲେ ସେଗୁଡ଼ିକୁ ଦେଖିପାରିବ । ଏହି ସୂକ୍ଷ୍ମ ପଦାର୍ଥଗୁଡ଼ିକୁ ଜୀବକୋଷ କୁହାଯାଏ । ଧଳା ଏବଂ ଲାଲ, ଏପରି ଦୁଇ ପ୍ରକାର ଜୀବକୋଷ ରକ୍ତରେ ଅଛି ।

ରକ୍ତରେ ଥିବା ଅଧିକାଂଶ କୋଷ, ଲାଲ ରକ୍ତ କୋଷ । 'ଭାରତର ଲୋକସଂଖ୍ୟା ଯେତେ, ମାତ୍ର ଦୁଇ ଟୋପା ରକ୍ତରେ ସେତିକି ଲାଲ କୋଷ ରହିଛି । ଏହି କୋଷଗୁଡ଼ିକ ରକ୍ତରେ ଥିବାରୁ ତାହା ଲାଲ ଦେଖାଯାଏ । ରକ୍ତରେ ଯେତେ ଅମ୍ଳଜାନ ଅଛି, ପ୍ରାୟ ସେ ସମସ୍ତଙ୍କୁ ଏହି ଲାଲ ରକ୍ତକୋଷମାନେ ବହି ନିଅନ୍ତି ।

ଧଳା ରକ୍ତ କୋଷମାନେ ଦେହକୁ ରୋଗ ହାତରୁ ରକ୍ଷା କରନ୍ତି । ଆମ ଚାରିପଟେ ଏତେ ରୋଗ ଜୀବାଣୁ ରହିଛନ୍ତି ଯେ; ଆମେ ଯେତେ ଚେଷ୍ଟା କଲେ ମଧ୍ୟ ସେମାନଙ୍କ ହାତରୁ ରକ୍ଷାପାଇବା ଅସମ୍ଭବ । ସେମାନେ ଯେତେବେଳେ ଆମ ଦେହରେ ପଶିଯାଆନ୍ତି, ଧଳା ରକ୍ତକୋଷଗୁଡ଼ିକ ତାଙ୍କ ସଙ୍ଗେ ଲଢ଼ାଇ କରି ଅଧିକାଂଶ ସ୍ଥଳରେ ସେମାନଙ୍କୁ ହରେଇ ଦିଅନ୍ତି । ମାତ୍ର ଥରେ ଥରେ ଧଳା କୋଷମାନେ ହାରିଯାଆନ୍ତି । ସେତିକିବେଳେ ଆମେ ରୋଗରେ ପଡ଼ୁ । ତଥାପି ଏହି ଧଳା କୋଷମାନେ ହଟି




ନ ଯାଇ ଲଢ଼େଇ ଚାଲୁ ରଖନ୍ତି ଏବଂ ପ୍ରାୟ ଶେଷରେ ଜୟଲାଭ କରନ୍ତି । ସେତେବେଳେ ଆମ ରୋଗ ଭଲ ହୋଇଯାଏ । ତେଣୁ ରକ୍ତ ଯେ କେବଳ ଜିନିଷ ବୁହା ଗାଡ଼ି ଭଳି, ତା'ନୁହେଁ; ଏହା ଚଳନ୍ତି ସୈନ୍ୟଦଳ ପରି ସର୍ବଦା ଗତିଶୀଳ ।

କେତେକ ଗାଡ଼ି ବିଭିନ୍ନ ସ୍ଥାନରେ ମାଲପତ୍ର ପହଞ୍ଚାଇ ଦିଅନ୍ତି । ରକ୍ତ ମଧ୍ୟ ସେହିପରି ଦେହର ସବୁ ଅଂଶରେ ଖାଦ୍ୟ ଓ ଅମ୍ଳଜାନ ପହଞ୍ଚାଇଦିଏ । କେତେକ ଗାଡ଼ି ଜିନିଷ ଉଠାଇନେବା କାମ କରନ୍ତି । ରକ୍ତ ସେହିପରି ଦେହର ବିଭିନ୍ନ ଅଂଶରୁ ଦୂଷିତ ପଦାର୍ଥ ଉଠାଇଆଣେ । ରକ୍ତ ଚଳନ୍ତି ସୈନ୍ୟଦଳ ପରି ମଧ୍ୟ କାମ କରେ । ଆବଶ୍ୟକ ସ୍ଥାନରେ ଏହା ସୈନ୍ୟ ପହଞ୍ଚାଇଦିଏ । ଗୋଟିଏ କଥାରେ କହିଲେ ରକ୍ତ ସବୁବେଳେ ଚାଲୁଛି ବା ବହୁଛି । ଏହାକୁ କିଏ ଏପରି ଚଳାଇ ରଖିଛି ଜାଣକି ?



ହୃଦଯନ୍ତ୍ର ରୂପକ ଏକ ଅଦ୍ଭୁତ ପମ୍ପ ବଳରେ ରକ୍ତ ଦେହ ଭିତରେ ଚାଲେ । ହୃଦଯନ୍ତ୍ରର ଡାହାଣ ପାଖ ଏବଂ ବାମ ପାଖ ଦୁଇଟି ପମ୍ପ ଭଳି କାମ କରନ୍ତି । ଡାହାଣ ପାଖ ପମ୍ପ ଫୁସ୍‌ଫୁସ୍‌ରେ ରକ୍ତ ଭର୍ତ୍ତି କରେ । ତା'ପରେ ସେହି ରକ୍ତ ଫୁସ୍‌ଫୁସ୍‌ରୁ ହୃଦଯନ୍ତ୍ରର ବାମ ପାଖକୁ ଯାଏ । ହୃଦଯନ୍ତ୍ରର ବାମପାଖ ସେହି ରକ୍ତକୁ ପମ୍ପ କରି ସମସ୍ତ ଶରୀରକୁ ପଠାଏ । ଶରୀରର ସବୁ ଅଂଶରୁ ରକ୍ତ ହୃଦଯନ୍ତ୍ରର ଡାହାଣ ପଟକୁ ଆସି ସେଠାରୁ ପୁଣି ପମ୍ପ ହୋଇ ଫୁସ୍‌ଫୁସ୍‌ରେ ପଶେ । ଏ ଚକ୍ର ଏହିପରି ଅନବରତ ଚାଲିଥାଏ ।

ହୃଦଯନ୍ତ୍ରର ବାମ ପାଖରୁ ପମ୍ପ ହୋଇ ଯେଉଁ ରକ୍ତ ଦେହର ସବୁ ଆଡକୁ ଯାଏ, ସେ କି ରକ୍ତ ଜାଣ ? ଯେଉଁ ରକ୍ତ ଫୁସ୍‌ଫୁସ୍‌ରେ ଅମ୍ଳଜାନ ସଂଗ୍ରହ କରିଥାଏ ଏବଂ ଅଙ୍ଗାରକାମ୍ଳ ଛାଡି ଦେଇଥାଏ, ତାହା ସେହି ରକ୍ତ । ହୃଦଯନ୍ତ୍ରର ବାମ ପାଖରୁ ପମ୍ପ ହୋଇ ଏହି ରକ୍ତ ଦେହର ବିଭିନ୍ନ ଅଂଶରେ ଅମ୍ଳଜାନ ପହଞ୍ଚାଇଦିଏ ଏବଂ ସେଠାରୁ ଅଙ୍ଗାରକାମ୍ଳ ନେଇଆସେ । ତା'ପରେ ଏହା ହୃଦଯନ୍ତ୍ରର ଡାହାଣ ପାଖକୁ ଫେରିଆସେ । ହୃଦଯନ୍ତ୍ରର ଡାହାଣ ପାଖ ସେ ରକ୍ତକୁ ପମ୍ପ କରି ପୁଣି ଫୁସ୍‌ଫୁସ୍‌କୁ ଦିଏ । ସେଠାରେ ରକ୍ତରେ କିଛି ଟଟକା ଅମ୍ଳଜାନ ମିଶେ ଏବଂ କିଛି ଅଙ୍ଗାରକାମ୍ଳ ରହିଯାଏ । ଏ ଚକ୍ର ଏହିପରି ଚାଲିଥାଏ ।

ଆମେ ସମସ୍ତେ ଯଦି ବାୟୁରେ ଥିବା ଅମ୍ଳଜାନ କ୍ରମାଗତ ନେଉଥାନ୍ତୁ ଏବଂ ଅଙ୍ଗାରକାମ୍ଳ ଛାଡୁଥାନ୍ତୁ, ତେବେ ଦିନ ଆସନ୍ତା ଯେଉଁ ଦିନ ବାୟୁରୁ ସମସ୍ତ ଅମ୍ଳଜାନ ସରିଯାଆନ୍ତା ଏବଂ ଅଙ୍ଗାରକାମ୍ଳରେ ବାୟୁ ପୂର୍ଣ୍ଣ ହୋଇଯାଆନ୍ତା । ଆମ ବନ୍ଧୁ ଉଦ୍ଭିଦମାନେ ନ ଥିଲେ ସେକଥା କେଉଁଦିନୁ ହୁଅନ୍ତାଣି । ଏହି ବନ୍ଧୁମାନେ ସେମାନଙ୍କ ଖାଦ୍ୟ ତିଆରି କରିବା ପାଇଁ ଅଙ୍ଗାରକାମ୍ଳତକ ନେଇଯାଆନ୍ତି ଏବଂ ବାୟୁରେ ଅମ୍ଳଜାନ ଛାଡିଦିଅନ୍ତି । ଆମେ ସେହି ଅମ୍ଳଜାନ ନେଇ ଖାଦ୍ୟ ଜୀର୍ଣ୍ଣ କରୁ ଏବଂ ଅଙ୍ଗାରକାମ୍ଳକୁ ବାୟୁରେ ଛାଡିଦେଉଁ । ଏ ଚକ୍ର ଏହିପରି ଚାଲିଥାଏ ।





ଅଙ୍ଗାରକାମ୍ଳ ଛଡ଼ା ଆଉ କେତେକ ଅଦରକାରୀ ପଦାର୍ଥ ମଧ୍ୟ ଦେହରୁ ବାହାରେ । ବୃକ୍କ ଏଗୁଡ଼ିକୁ ଦେହରୁ ବାହାର କରିଦିଏ । ଆମ ପ୍ରତ୍ୟେକଙ୍କର ଦୁଇଟି ଲେଖାଏଁ ବୃକ୍କ ଅଛି । ଏଗୁଡ଼ିକର ଆକୃତି ଶିମ୍ବ ମଞ୍ଜି ପରି । ପିଠି ଆଡ଼କୁ ଲାଗି ପେଟ ଭିତରେ ଏହି ଦୁଇଟି ଥାଏ ।

ଆଲମାରୀରୁ ତୁମେ ଯେମିତି ଅଳିଆ ସଫା କର, ବୃକ୍କ ସେହିପରି ଦେହ ଭିତରୁ ଅଦରକାରୀ ଜିନିଷ ସଫା କରିଦିଏ । ତୁମକୁ ପ୍ରଥମେ ଥାକଗୁଡ଼ିକରୁ ସବୁ ଜିନିଷ କାଢ଼ିଦେବାକୁ ହୁଏ । ତା'ପରେ ଯେଉଁ ଜିନିଷଗୁଡ଼ିକ ଦରକାରୀ ତାକୁ ପୁଣି ସେଥିରେ ରଖି ଅଦରକାରୀ ପଦାର୍ଥ ସବୁ ବାଛି ଅଳିଆରଖା ଝୁଡ଼ିରେ ଫିଙ୍ଗି ଦେବାକୁ ପଡ଼େ । ବୃକ୍କ ସେହିପରି ରକ୍ତକୁ ଆଗ ଛାଣିଦିଏ । ଏହି ଛଣା ରକ୍ତରେ ରକ୍ତକୋଷଗୁଡ଼ିକ ଛଡ଼ା ଆଉ ପ୍ରାୟ ଦରକାରୀ ଓ ଅଦରକାରୀ ଜିନିଷମାନ ଥାଏ । ବୃକ୍କ ରକ୍ତରେ ଦରକାରୀ ଜିନିଷତକ ରଖିଦେଇ ଅଦରକାରୀ ଜିନିଷଗୁଡ଼ିକୁ ମୂତ୍ର ରୂପେ ବାହାର କରିଦିଏ ।



ଆରମ୍ଭରେ ଆମେ ଦେହକୁ ଗୋଟିଏ ପାସଲ ସହିତ ତୁଳନା କରିଥିଲୁ । ସେ ପାର୍ସଲ ଭିତରଟା ଆମେ ଠିକେ ଠିକେ ଦେଖିନେଲୁ । କିନ୍ତୁ ପାର୍ସଲ ଉପରେ ଯେଉଁ ଘୋଡଣୀଟି ଦିଆଯାଇଛି, ତା' ବିଷୟରେ ତ କିଛି ଜାଣିଲୁ ନାହିଁ ?

ଆମ ଦେହକୁ ଘୋଡାଇ ରଖିଛି ଚର୍ମ । କିନ୍ତୁ ଚର୍ମ ଯେ କେବଳ ଘୋଡଣୀ କାମ କରେ, ତା'ନୁହେଁ । ଏହା ଥଣ୍ଡା ଓ ଗରମରୁ ଏବଂ କଣ୍ଟା ଓ ପିନ୍ ପ୍ରଭୃତିରୁ ଦେହକୁ ରକ୍ଷାକରେ । ତା'ଛଡା ଚର୍ମରେ ଆଘାତ ଲାଗିଲେ ତାହା ଆପେ ଆପେ ଶୁଖିଯାଏ । କୌଣସି ଚର୍ମ କଟିଗଲେ ବା ପୋଡିଗଲେ ଅଳ୍ପ ଦିନ ଭିତରେ ସେ ଜାଗା ଶୁଖିଯାଇ ସେଠାରେ ନୂଆ ଚର୍ମ ଘୋଡେଇ ହୋଇଯାଏ ।

ଖରାଦିନେ ଦେହକୁ ଥଣ୍ଡା ଏବଂ ଶୀତ ଦିନେ ଉଷୁମ ରଖିବାରେ ମଧ୍ୟ ଚର୍ମ ସାହାଯ୍ୟ କରେ । ଗ୍ରୀଷ୍ମକାଳ ଖରାରେ ତୁମେ ଯଦି ପଦାରେ ବୁଲିବ, ତୁମ ଦେହରୁ ଝାଳ ବୋହିବ । ଝାଳ ଦେହକୁ ଓଦା କରିଦିଏ । ଝାଳ ଶୁଖିଗଲେ ଦେହ ଥଣ୍ଡା ଲାଗେ । ଚର୍ମର ପ୍ରକୃତି ହେଲା—ଗରମ ପାଇଲେ ଝାଳ ବୋହିବ, ମାତ୍ର ଥଣ୍ଡା ପାଇଲେ ବୋହିବ ନାହିଁ । ଚର୍ମ ଏହିପରି ଦେହ ଭିତରର ତାପକୁ ସର୍ବଦା ସମାନ ରଖିବାରେ ସାହାଯ୍ୟ କରେ । ସେଥିପାଇଁ ପ୍ରଚଣ୍ଡ ଖରା ଦିନ ହେଉ ବା ଘୋର ଶୀତ ଦିନ ହେଉ ଦେହରେ ଥର୍ମୋମିଟର ଦେଲେ ଏକା ପ୍ରକାର ତାପ ଥିବାର ଜଣାପଡେ ।

ବର୍ତ୍ତମାନ ଚାଲ ଦେଖିବା ଯେଉଁ ଅସ୍ଥି-ପଞ୍ଜର ଦେହକୁ ଧରି ରଖିଛି, ତାହା କ'ଣ ? ଦେହର କଙ୍କାଳ ଗଢ଼ା ହୋଇଛି ଅସ୍ଥି ଦ୍ୱାରା । ଅସ୍ଥି ନଥିଲେ ମେଞ୍ଚାଏ ହାଲୁଆ ପରି ଆମେ ନରମ ହୋଇଥାନ୍ତୁ । ଆମର ଆକାର ପ୍ରକାର କିଛି ନଥାନ୍ତା । ଘରର ଛାତ ଯେପରି ଗଢ଼ାଯାଏ, ହାଡ଼ର ଗଠନ ଠିକ ସେହିପରି । ଛାତରେ ଗୁଡ଼ିଏ ଲୁହା ଛଡ଼ର ଜାଲି ଏପରି ଖଞ୍ଜା ହୋଇଥାଏ ଯେ, ଯେତେ ଟଣାଓଟରା ଏବଂ ବଙ୍କା କଲେ ମଧ୍ୟ ତାହା ସମ୍ଭାଳିନିଏ । ତା' ଭିତରେ ପୁଣି ଅତି ଶକ୍ତ କଂକ୍ରିଟ ଭର୍ତ୍ତି କରାଯାଇଥାଏ । ହାଡ଼ ସେହିପରି ଏତେ ଶକ୍ତ ଯେ, ଟାଣିଲେ ବା ବଙ୍କେଇଲେ ସହଜରେ ଭାଙ୍ଗିଯାଏ ନାହିଁ । ମାତ୍ର ଛାତ ଅପେକ୍ଷା ହାଡ଼ ଅନେକ ଗୁଣରେ ଭଲ । ଛାତ ବଢ଼େ ନାହିଁ, କିନ୍ତୁ ପିଲାଟିଏ ମଣିଷ ହେବା ପର୍ଯ୍ୟନ୍ତ ତା' ଦେହର ହାଡ଼ ବଢ଼ୁଥାଏ । ପୁଣି ଆମ ଚଳପ୍ରଚଳର ସୁବିଧା ପାଇଁ ଏବଂ ଦେହର ଓଜନ ସମ୍ଭାଳିବା ପାଇଁ ଏହି ହାଡ଼ ସବୁ ଅନବରତ ବଦଳୁଥାଆନ୍ତି । ତା'ଛଡ଼ା କୌଣସି ହାଡ଼ ଯଦି ଭାଙ୍ଗିଯାଏ, କେତେକ ସପ୍ତାହ ଭିତରେ ଆପଣାଛାଏଁ ତାହା ସଜାଡ଼ି ହୋଇଯାଏ ।

ଆମ ଦେହ ଯଦିଓ ଏକ ଇଞ୍ଜିନ ଭଳି, ଅନେକ ଗୁଣରେ ଏହା ଇଞ୍ଜିନଠାରୁ ଉତ୍କୃଷ୍ଟ । ଉଦାହରଣ ସ୍ୱରୂପ, ଆମ ଦେହର ଜାଣିବାର ଓ ଶିଖିବାର ଶକ୍ତି ଅଛି । ଆମେ ଆଗରୁ ଜାଣିଛେ ଯେ, କୌଣସି ଜିନିଷକୁ ଛୁଇଁ ଦେଲେ ଆମ ଚର୍ମ କହିଦେବ ତାହା କେତେ ଗରମ କି ଥଣ୍ଡା, ଡାଙ୍ଗୁଆ କି ମୁଣ୍ଡା, କଠିନ କି କୋମଳ । କି ପ୍ରକାର ଜିନିଷ ଆମେ ଛୁଇଁଲୁ, ଚର୍ମ ସେ ଖବର ମସ୍ତିଷ୍କକୁ ତୁରନ୍ତ ପଠାଇ ଦେଉଥିବାରୁ ଆମେ ତାହା ଜାଣିପାରୁ । ଚର୍ମ ପରି ଯେଉଁ ଇନ୍ଦ୍ରିୟମାନେ ବାହାର ଜଗତ ବିଷୟ ଜାଣିବାରେ ଆମକୁ ସାହାଯ୍ୟ କରନ୍ତି, ସେମାନଙ୍କୁ ଜ୍ଞାନେନ୍ଦ୍ରିୟ କୁହାଯାଏ ।

ଆଖି ଆମର ପ୍ରଧାନ ଜ୍ଞାନେନ୍ଦ୍ରିୟ । ଏହାର ଆକାର ପେଣ୍ଡୁ ପରି ଏବଂ ତିନୋଟି ପ୍ରଧାନ ସ୍ତରରେ ଏହା ଗଠିତ । ସମ୍ମୁଖରେ ଥିବା ପ୍ରଥମ ସ୍ତରଟି ସ୍ୱଚ୍ଛ । ଏହା ଭିତର ଦେଇ ଆମେ ଦ୍ୱିତୀୟ ସ୍ତରଟି ଦେଖିପାରୁ । ତାହା ରଙ୍ଗୀନ । ଏହି ସ୍ତରର ରଙ୍ଗଯୋଗୁଁ ଜଣେ ଜଣେ ବିଲ୍ଲି-ଆଖିଆ, କେହି ନେଳି-ଆଖିଆ, କେହି ବା ଅନ୍ୟ ପ୍ରକାର ଦେଖାଯାଆନ୍ତି । ସବାଶେଷରେ ଯେଉଁ ତୃତୀୟ ସ୍ତରଟି ଥାଏ, ତାହା ଆଲୋକ ଅନୁଭବ କରିପାରେ । ଏହି ସ୍ତରଟି ମସ୍ତିଷ୍କ ସହ ସମ୍ପୃକ୍ତ ।

ବାହାରର ଆଲୋକ ସମ୍ମୁଖରେ ଥିବା ସ୍ୱଚ୍ଛ ସ୍ତର ଦେଇ ଆଖିରେ ପ୍ରବେଶକରେ । ଆଖିର କେନ୍ଦ୍ରସ୍ଥଳରେ ଥିବା ଛୋଟ କଳା ବୃତ୍ତ ବାଟେ ଏହା ଭିତରକୁ ଯାଏ । ନେଳି ଆଖିଆ ଲୋକଙ୍କର ମଧ୍ୟ ଏହି ବୃତ୍ତଟି କଳା । ଆଖିରେ ପଡୁଥିବା ଆଲୋକର ପରିମାଣ ଅନୁସାରେ ଏହି କଳା ବୃତ୍ତଟି ପ୍ରସାରିତ ଅଥବା ସଙ୍କୁଚିତ ହୋଇଥାଏ । ଉଜ୍ଜ୍ୱଳ ସୂର୍ଯ୍ୟାଲୋକରେ ତାହା ଛାକି ହୋଇ ଖୁବ୍ ଛୋଟ ହୋଇଯିବାରୁ ବେଶି ଆଲୁଅ ଆଖି ଭିତରକୁ ଯାଇପାରେ ନାହିଁ । କିନ୍ତୁ ଅନ୍ଧାର ଘରେ ପଶିବା ବେଳେ ଏହା ଓସାରିଆ ହୋଇଯିବାରୁ ଅଧିକ ଆଲୁଅ ଆଖିକୁ ଯାଏ ଏବଂ ଅଳ୍ପ କେତେ ସେକେଣ୍ଡ ଭିତରେ ଆମେ ସବୁ ଜିନିଷ ପରିଷ୍କାର ଦେଖିପାରୁ । (ଗୋଟିଏ ଟର୍ଚ୍ଚ ଓ ଦର୍ପଣ ସାହାଯ୍ୟରେ ତୁମେ ଏହା ଜାଣିପାରିବ । ତୁମେ ଯେଉଁ ଘରେ ବସିଛ, ତାକୁ ଅନ୍ଧାର କରିଦିଅ । ତୁମ ଆଖିର କଳା ବୃତ୍ତ କେତେ ବଡ ଦିଶୁଛି ଦର୍ପଣରେ ଦେଖ । କଡପଟୁ ଗୋଟିଏ ଆଖି ଉପରକୁ ଟର୍ଚ୍ଚ ପକାଅ । ଦେଖିବ କଳା ବୃତ୍ତଟି ସାଙ୍ଗେ ସାଙ୍ଗେ ଛାକି ହୋଇଯିବ ।)



ଆଖିର ବାହାର ପଟକୁ ଥିବା ଯେଉଁ ସ୍ତର ଦେଇ ଆଲୁଅ ଆଖି ଭିତରକୁ ପଶେ, ତାହା ଯବ କାଚ ଭଳି ଆଲୋକକୁ କେନ୍ଦ୍ରୀଭୂତ କରିନିଏ । (ଯବକାଚ କିପରି ଆଲୋକକୁ କେନ୍ଦ୍ରୀଭୂତ କରେ, ତାହା ଦେଖିବା ପାଇଁ ଖରାରେ ଯବକାଚଟିଏ ଧର, ଦେଖିବ ସୂର୍ଯ୍ୟ କିରଣ ତା' ଭିତରେ ପଶିବା ପରେ ଗୋଟିଏ ବିନ୍ଦୁରେ କେନ୍ଦ୍ରୀଭୂତ ହେବ ।) ସେହିପରି ଆଖି ଭିତର ଦେଇ ଆଲୁଅ ଯିବାବେଳେ ଆଖିର ତୃତୀୟ ସ୍ତର ଉପରେ କେନ୍ଦ୍ରୀଭୂତ ହୁଏ । ଏହି ସ୍ତରଟି ପରଦା ଭଳି କାମ କରେ । ବସ୍ତୁରୁ ଆଲୋକ ଆସି ଏହି ପରଦାରେ ଠିକ୍ ସେହି ବସ୍ତୁପରି ଏକ ପ୍ରତିରୂପ ଗଠନ କରେ । ଏହି ପ୍ରତିରୂପ ମସ୍ତିଷ୍କ ପାଖକୁ ପଠାଇ ଦିଆଯାଏ । ଏହି ଉପାୟରେ ଆମେ ସେ ବସ୍ତୁଟିକୁ ଦେଖିପାରୁ ।

ଧର ତୁମେ ବାହାରେ ଖେଳୁଛ । ମାଆଙ୍କର ଦରକାର ପଡ଼ିବାରୁ ସେ ତୁମକୁ ଡାକିଲେ । ତାଙ୍କ ପାଟି ଶୁଣି ତୁମେ ଦୌଡ଼ି ଗଲ । ଏଥିରୁ ଜାଣ, ଶୁଣିବାଟା କେତେ ଦରକାରୀ । କାନର ଯେଉଁ ଅଂଶ ବାହାରକୁ ଦେଖାଯାଏ, ଶୁଣିବା କାର୍ଯ୍ୟରେ ତାହା ସେତେ ସାହାଯ୍ୟ କରେ ନାହିଁ । ସେଇଟି କେବଳ କାହାଳୀ ପରି ଶବ୍ଦକୁ କାନ ପରଦା ଆଡ଼କୁ ମୁହାଁଇ ଦିଏ । ଶବ୍ଦ ବାଜିଲା ମାତ୍ରେ କାନ ପରଦା କମ୍ପିତ ହୁଏ । ସେଠାରୁ ଏହି କମ୍ପନ ମଧ୍ୟକର୍ଣ୍ଣକୁ ଯାଏ ଏବଂ ସେଠାରୁ ପୁଣି ଭିତର କାନରେ ପହଞ୍ଚେ । ଭିତର କାନରେ ଏହି କମ୍ପନକୁ ଅନୁଭବ କରିପାରିବା ଯନ୍ତ୍ର ରହିଛି । ଏହି ଯନ୍ତ୍ର ସକ୍ରିୟ ହେଲେ ମସ୍ତିଷ୍କକୁ ସମ୍ବାଦ ପଠାଇଦିଏ । ଏହା ଫଳରେ ଆମେ ଶୁଣିପାରୁ ।





ନାକ ଆମର ଅନ୍ୟ ଏକ ଇନ୍ଦ୍ରିୟ । ଏହା ସାହାଯ୍ୟରେ ଆମେ ଗନ୍ଧ ବାରିପାରୁ । ନାକ ଭିତରର ଉପର ମୁଣ୍ଡେ ଗନ୍ଧ ବାରିହୁଏ । ଆମର ଶ୍ୱାସକ୍ରିୟା ସାଧାରଣ ଭାବରେ ଚାଲିଥିବା ବେଳେ ବାୟୁ ନାକର ଉପର ମୁଣ୍ଡକୁ ପ୍ରାୟ ଯାଏନାହିଁ । ତେଣୁ ଠିକ୍ ଭାବେ ଶୁଙ୍ଘିବାକୁ ହେଲେ ଆମକୁ ଟିକିଏ ଜୋରରେ ପ୍ରଶ୍ୱାସ ନେବାକୁ ହେବ, ଯାହା ଦ୍ୱାରା ବାୟୁ ନାକର ଉପର ମୁଣ୍ଡକୁ ଯାଇପାରିବ । ଏହାକୁ ହିଁ ଶୁଙ୍ଘିବା କୁହାଯାଏ । (ନାକ ପାଖରେ ଗୋଟିଏ ଗୋଲାପ ଫୁଲ ଧରି ଦେଖ । ଜୋର୍‌ରେ ଶୁଙ୍ଘିଲେ ତା'ର ଯେଉଁ ଗନ୍ଧ ବାରି ହେବ, ସାଧାରଣ ଭାବରେ ପ୍ରଶ୍ୱାସ ନେବାବେଳେ ତାହା ହେବ ନାହିଁ ।) ଗନ୍ଧ ବାରିବା ଛଡ଼ା ନାକର ଅନ୍ୟ ଏକ କାର୍ଯ୍ୟ ହେଉଛି ଶ୍ୱାସକ୍ରିୟା ।



ଜିଭ ଆଉ ଗୋଟିଏ ଇନ୍ଦ୍ରିୟ । ଏହା ସ୍ୱାଦ ବାରିବାରେ ଆମକୁ ସାହାଯ୍ୟ କରେ । ଜିଭର ବିଭିନ୍ନ ସ୍ଥାନରେ ବିଭିନ୍ନ ପ୍ରକାର ସ୍ୱାଦ ଭଲ ବାରିହୁଏ । ଉଦାହରଣ ସ୍ୱରୂପ, ମିଠା ଜିନିଷକୁ ଜିଭ ଆଗରେ ରଖିଲେ ତା'ର ମିଠା ଠିକ୍ ଜାଣିହୁଏ ଏବଂ ଆମ୍ବକୁ ଜିଭ ଧାରରେ ରଖିଲେ ତା'ର ଖଟା ଭଲ ଜଣାପଡ଼େ । ଅଥଚ ଜିଭ ପଛପଟେ ପିତା ବଟିକାଟାଏ ବାଜିବା ମାତ୍ରେ ତାହା ଉତ୍କଟ ପିତା ଲାଗେ, ତେଣୁ ପିତା ବଟିକା ଗିଳିବା ବେଳେ ତାକୁ ଗଳାରେ ସିଧା ଛାଡ଼ିଦେବ, ଯେପରି ଜିଭରେ ମୋଟେ ବାଜିବ ନାହିଁ ।



ଚର୍ମ, ଆଖି, କାନ, ନାକ ଓ ଜିଭ—ଏହି ଜ୍ଞାନେନ୍ଦ୍ରିୟଗୁଡ଼ିକ ଆମ ଚାରିପଟର ଚିତ୍ର ମସ୍ତିଷ୍କକୁ ଜଣାଇଥାନ୍ତି । ମସ୍ତିଷ୍କ ସେହିସବୁ ସମ୍ବାଦକୁ ଏକାଠି କରି କ'ଣ କରିବାକୁ ହେବ ସ୍ଥିର କରେ । ଅଧିକାଂଶ ସ୍ଥଳରେ ସେ ଯେଉଁ କାମର ନିର୍ଦ୍ଦେଶ ଦିଏ, ସେଥିରେ ଅଙ୍ଗଚାଳନା ଆବଶ୍ୟକ ପଡ଼େ । ଉଦାହରଣ ସ୍ୱରୂପ, ଗୋଟିଏ ଘରେ ନିଆଁ ଲାଗି ଥିବାର ତୁମେ ଦେଖିଲ । ତୁମର ମସ୍ତିଷ୍କର ନିର୍ଦ୍ଦେଶରେ ତୁମେ ପାଟି କରି ଉଠିଲ, ନିଆଁ । ତା'ପରେ ବାଲ୍‌ଟିଏ ପାଣି ଆଣିବାକୁ ଦୌଡ଼ିଗଲ । ମାଂସପେଶୀ ଯୋଗୁଁ ଏହିସବୁ କାମ କରିବା ସମ୍ଭବ ହେଲା । ଚାଲିବା, ଦୌଡ଼ିବା, ନାଚିବା ଆଦି ଯେ କୌଣସି ପ୍ରକାର ଅଙ୍ଗ ଚାଳନା ଏହି ପେଶୀମାନେ ହିଁ କରାଇଥାନ୍ତି ।

ପେଶୀଗୁଡ଼ିକ ହାଡ଼ ସଙ୍ଗେ ସଂଯୁକ୍ତ । ସେଗୁଡ଼ିକ ସଙ୍କୁଚିତ ହୋଇଗଲେ ଅଙ୍ଗ ଗତିଶୀଳ ହୁଏ । ଆମେ ଇଚ୍ଛାନୁସାରେ କୌଣସି ପେଶୀକୁ ସଙ୍କୁଚିତ କରିପାରୁ । କିନ୍ତୁ ବେଳେ ବେଳେ ଆମର ବିନା ଇଚ୍ଛାରେ ମଧ୍ୟ ପେଶୀ ଟାଣି ହୋଇଯାଏ । ଉଦାହରଣ ସ୍ୱରୂପ, ଧର ତୁମେ କଣ୍ଟା ମାଡ଼ି ପକାଇଲ । କିଛି ଭାବିବା ପୂର୍ବରୁ ତୁମେ ହଠାତ୍ ପଛକୁ ଘୁଞ୍ଚି ଆସିବ । ଏଭଳି ଯେଉଁ କାମରେ ଭାବିବା ଦରକାର
ତାକୁ କହନ୍ତି "ପ୍ରତିକ୍ଷେପ କ୍ରିୟା ।" ଦେହରେ ଆଘାତ ଲାଗିବା ପୂର୍ବରୁ ପ୍ରତି
ଆମକୁ ରକ୍ଷାକରେ । ଏ କ୍ଷେତ୍ରରେ ପ୍ରତିକ୍ଷେପ କ୍ରିୟା ଯୋଗୁଁ ହିଁ କଣ୍ଟାଟା ପା
ଭିତରକୁ ଗଲିପାରିଲା ନାହିଁ । କିନ୍ତୁ ପ୍ରତିକ୍ଷେପ କ୍ରିୟା ପରେ ଭାବିବା ଉଚିତ୍
ଘଟଣାରେ ତୁମେ ଯଦି ଟିକିଏ ଭାବିବ, କଣ୍ଟାକୁ ଖୋଜି ତାକୁ କୌଣସି ଜାଗାରେ ଫିଙ୍ଗି ଦେବାକୁ ମନ ହେବ, ଯେପରି ପରେ ତୁମେ କିମ୍ବା ଅନ୍ୟ କଣ୍ଟା ମାଡ଼ିବେ ନାହିଁ ଭାବିବା ସବୁବେଳେ ଭଲ । ଏହି ଭାବିବାଟା ମସ୍ତିଷ୍କ





ପାରେ । କେହି ନ କହିଲେ ମଧ୍ୟ ଚିନ୍ତା କରି ଗୋଟିଏ ଉତ୍ତର ପାଇପାରେ । ଏସବୁ କରିବା ପାଇଁ ଯେଉଁ ଶକ୍ତି ଦରକାର, ତାହା ସେ ସରଳ ଖାଦ୍ୟରୁ ଆରାମରେ ବାହାର କରେ । ଅଦରକାରୀ ପଦାର୍ଥ କାଢ଼ିନେବା ପାଇଁ ସେ କାହାର ସାହାଯ୍ୟ ଲୋଡ଼େନାହିଁ । କୌଣସି ଯନ୍ତ୍ର ଏତେ ସୁନ୍ଦର ଭାବରେ ଏସବୁ କାମ କରିପାରିବ ନାହିଁ ।

ଦେହର କାମ କିପରି ଚାଲିଛି, ତୁମେ ବର୍ତ୍ତମାନ କିଛି କିଛି ଜାଣିଲ, କିନ୍ତୁ ଆହୁରି ଅନେକ କଥା ଜାଣିବାକୁ ଅଛି । ପ୍ରଶ୍ନ ପଚାରି ଆମେ ଅଧିକ କଥା ଜାଣିପାରିବା । ପ୍ରଶ୍ନ ପଚାରି ଉତ୍ତର ପାଇବାକୁ ହୁଏ । ପୂର୍ବର ଯେଉଁସବୁ ଅଜଣା ବିଷୟ ପରେ ଜଣାପଡ଼ିଛି, ତାକୁ ଆବିଷ୍କାର କୁହାଯାଏ । ତେଣୁ ପ୍ରଶ୍ନ ପଚାରିବାକୁ ଭୁଲ ନାହିଁ । ହୋଇପାରେ, ତୁମେ ବି ଦିନେ କିଛି ଆବିଷ୍କାର କରିପାରିବ । ତୁମେ ଆବିଷ୍କାର କରିଥିବା ବିଷୟ ଏହିଭଳି ବହିରେ ଦିନେ ସ୍ଥାନ ପାଇପାରେ ।



Printed by Lancer Press A-3/1 Maya Puri-I New Delhi